# ଯଦି ଥାଆନ୍ତା ଡେଣା



ଡକ୍ଟର ପ୍ରସନ୍ନ କୁମାର ମିଶ୍ର



ଓଡ଼ିଶା ବୁକ୍ ଷ୍ଟୋର

## ❊ ଯଦି ଥାଆନ୍ତା ଡେଣା ❊

ସାନ ସାନ ପିଲାଙ୍କ ମନୋରଞ୍ଜନ ପାଇଁ ବିଭିନ୍ନ ସମୟରେ ଲିଖିତ କବିତାଗୁଡ଼ିକୁ ଏକାଠି ବନ୍ଧି କଲାବେଳେ ଖୁସି ଲାଗୁଚି । କବିତାଗୁଡ଼ିକ ଅତି ସରଳ । ପିଲାଙ୍କୁ ମଜା ଲାଗିବ ନିଶ୍ଚୟ । ଶିଶୁମାନେ ନିଜେ ନିଜେ ବୋଲି ପାରିବା ଭଳି ଛନ୍ଦ ଏଥିରେ ବ୍ୟବହାର କରାଯାଇଛି ।

କିନ୍ତୁ ଏଥିରେ ଏମିତି କେତେକ କବିତା ଅଛି ଯେଉଁଗୁଡ଼ିକ ମା'ମାନେ ପିଲାଙ୍କୁ ପଢ଼ି ଶୁଣାଇବେ । ସେପରି କଲେ ଅକ୍ଷର ଶିଖି ନଥିବା ଅତି ସାନ ପିଲାଏ ମଧ୍ୟ କବିତାଗୁଡ଼ିକୁ ଉପଭୋଗ କରିପାରିବେ ।

ନୂଆ ସମାଜର ବିଚାରଧାରା ଗ୍ରହଣ କରିପାରିବା ପାଇଁ ପିଲାଙ୍କ ଭିତରେ ଆମକୁ ଏକ 'ନୂଆ ମନ' ସୃଷ୍ଟି କରିବାକୁ ପଡ଼ିବ । ଧୀରେ ଧୀରେ ସେମାନେ ନିଜ ନିଜର କ୍ଷମତା ଓ ଶକ୍ତିର ଆବିଷ୍କାର କରିପାରିବେ । ସେଇ ଦୃଷ୍ଟିରୁ ଆଜିର ଶିଶୁ-କବିତା ନିଜକୁ ନୂଆ ଭାବ ଓ ଭାଷାରେ ସଜ୍ଜିତ କରିବା ଉଚିତ ବୋଲି ମୁଁ ମନେକରେ । ପାଠକମାନେ ପ୍ରସ୍ତୁତ କବିତା ସଂକଳନରେ ନିଶ୍ଚୟ ତା'ର ସୂଚନା ପାଇବେ ।

ଶିଶୁ କବିତା ସର୍ଜନଶୀଳ ସାହିତ୍ୟର ପରିସରଭୁକ୍ତ । ଶିଶୁ-ପ୍ରତି ମମତାରୁ ତା'ର ଜନ୍ମ । ଆବେଦନ ଭିନ୍ନ ହେଲେ ମଧ୍ୟ କାବ୍ୟିକ ରସ-ସୃଷ୍ଟି ନିମନ୍ତେ ଏ କ୍ଷେତ୍ରରେ ମଧ୍ୟ ପ୍ରତିଭାର ଆବଶ୍ୟକତା ଅଛି ।

"ଯଦି ଥାଆନ୍ତା ଡେଣା" ପାଠ କଲାବେଳେ କବିତାଗୁଡ଼ିକର ମାର୍ମିକ ଆବେଦନ ଓ ସେସବୁର ଶିଶୁ-ସମ୍ପର୍କ ବିଷୟରେ ବିଦଗ୍ଧ ପାଠକ-ମାନେ ଚିନ୍ତା କରିବେ ବୋଲି ଆଶା କରୁଛି ।

କବିତାଗୁଡ଼ିକ—ବିଭିନ୍ନ ସମୟରେ 'ଶିଶୁଲେଖା' ଓ ମୀନାବଜାର ଭଳି ପତ୍ରିକାମାନଙ୍କରେ ପୂର୍ବରୁ ପ୍ରକାଶିତ ହୋଇଥିଲା ।

ଏହାର ସଂକଳନ ନିମନ୍ତେ ପ୍ରକାଶକ ଶ୍ରୀଯୁକ୍ତ ଗୋବିନ୍ଦଚରଣ ପାତ୍ର ଯତ୍ନ ନେଇଥିବାରୁ ମୁଁ ସାଧୁବାଦ ଜଣାଉଛି ।

ମାର୍ଚ୍ଚ, ୧୯୮୯, କଟକ-୨ ❊ ପ୍ରସନ୍ନ ❊

# ସୂଚୀ

| ବିଷୟ | ପୃଷ୍ଠା |
|---|---|
| ୧ । ଯନ୍ତ୍ର ଥାଆନ୍ତା ଡେଣା | ୧ |
| ୨ । ଗୋଟିଏ ଥିଲ ଗଛ | ୬ |
| ୩ । ପ୍ରିଏତ ମହାତ୍ମା | ୧୦ |
| ୪ । ଜନମ ଦିନରେ ମା' ନିକଟରେ ଶପଥ | ୧୪ |
| ୫ । ପିଲାଟିର ନାଁ ପିନା ଝଡ଼ଆ | ୧୬ |
| ୬ । ଶୋଇପଡ଼୍ ଶିଶିର | ୧୯ |
| ୭ । ସୁକୁମାରୀ ମାଉସୀ | ୨୧ |
| ୮ । ଉଡ଼ିଗଲା ଟେଣ୍ଡ୍ରାଳିଆ | ୨୩ |
| ୯ । ଟିକି ଚଢ଼େଇ | ୨୫ |
| ୧୦ । ହାଡ଼ ନାହିଁ କି ଖାଡ଼ ନାହିଁ | ୨୬ |
| ୧୧ । ଡର୍ ଡର୍ ଡର୍ | ୨୯ |
| ୧୨ । କୁନି ଝିଅର ଅଭିମାନ | ୩୧ |
| ୧୩ । ସୂର୍ଯ୍ୟର ମା' | ୩୩ |
| ୧୪ । ମାଟିକଣେଇ | ୩୫ |
| ୧୫ । ହୋଇବ ନେତା | ୩୮ |
| ୧୬ । ଜଣିଏ ନାହିଁ କେହି | ୪୦ |
| ୧୭ । ମୁଇଁ ପରା ଏ ଦେଶର ଭବିଷ୍ୟତ | ୪୩ |
| ୧୮ । ଝୁପୁ ଝୁପୁ ବରଷାରେ ଭିଜନା | ୪୬ |
| ୧୯ । ଖେଳଘୁଡ଼ି | ୪୯ |
| ୨୦ । ଗଲେ ଗାଈ ଚରେଇ | ୫୧ |
| ୨୧ । ରଥଯାତ୍ରା | ୫୫ |

# ଯଦ ଥାଆନ୍ତା ଡେଣା

ଆମ ମୀନାର ଯଦ ଥାଆନ୍ତା ଡେଣା
ଉଡ଼ି ଯାଆନ୍ତା ସେତ ଫୁର୍ କୁ କନା !



ଗଛ ଅଗରେ ଯାଇଁ
ବସନ୍ତା ଉଡ଼ି,
ପାଚଲ୍ ଜାମୁକୋଲ
ଖାଆନ୍ତା ଢୋଲ ।

ଡାକିଲେ କହନ୍ତା : ମୁଁ
ଯିବ ନାହିଁ ତ
ତୁମର ଗେହ୍ଲା ଝିଅ
ହେବ ନାହିଁ ତ ।

ପାରିବ ନାହିଁ ତୁମ ଗଣିତ କଷି
ପାରିବ ନାହିଁ ଏତେ ବନାନ ଘୋଷି
କହିବ 'ପଢ଼' ତଲେ ଥିଲେ ମୁଁ ସିନା
ଆମ ମୀନାର ଯଦି ଥାଆନ୍ତା ଡେଣା !

ଆମ ମୀନାର ଯଦି ଡେଣା ଥାଆନ୍ତା··· !
ଦୂରକୁ ଦୂରକୁ ସେ ଉଡ଼ି ଯାଆନ୍ତା ।

ସାଗର ପରବତ କାନନ ନଈ
ଦେଖି ପାରନ୍ତା ନୀଳ ଆକାଶେ ରହି ।



ଘୁରି ବେଲାରେ ଭାଙ୍ଗି
କେତେ ଲହଡ଼ି
ପାରାଦୀପରେ ନୂଆ
ଜାହାଜ ଚଢ଼ି ।

ଖେଳନ୍ତା କେତେ ଖେଳ ବାରବାଟୀରେ
ଲୋଟି ଯାଆନ୍ତା ଆମ ବୀର ମାଟିରେ ।

ଅଭୟବନେ ବାଘ-ମିରଗ ଖେଳ
ନନ୍ଦନ କାନନରେ ଗଣ୍ଡା-ଗୟଳ,

ଦେଖନ୍ତା ସୁନାବେଡ଼ା ରାଉରକେଲା
ନୂଆ ଓଡ଼ିଶା ଗଢା କପର ହେଲା ।

ଚିଲିକା ଶୋଭା ଆଉ ନିର୍ମଳଝର,
ଚଉଦୁଆରେ ଦେଖି କାଗଜକଳ,
ହୀରାକୁଦ ବନ୍ଧକୁ ନିମିଷେ ଡେଇଁ
ନୃସିଂହନାଥ ଝର କୂଳରେ ରହି,

ଚଢ଼େଇ ଗୀତ ଶୁଣି ଗୀତ ଲେଖନ୍ତା
ଆମ ମୀନାର ଯଦ ଡେଣା ଥାଆନ୍ତା ।

ଡାକନ୍ତେ ଯେବେ ମାଆ—
ମୀନା ଲୋ ଆ···
ଚକୁଳି ପିଠା ଖାଇ
ଖୁସିରେ ଯା···
କହନ୍ତା ମୀନା—"ଆହା,
କାଣେ ମୁଁ କାଣେ
ବଡ଼ ବାଗରେ ମିଛ
କହୁଚ ତୁମେ ।
ଅଟାରେ ହୁଏନ ତ
ଚକୁଳି ପିଠା,
କେଉଁବେଳେ ହେଲା କ
ପିଠୋଉ ବଟା ?"

କହନ୍ତେ ମାଆ—"ମୋର କି ହେଲା ଦୋଷ
କେଉଁ କଥାରେ ଏତେ କରୁଛୁ ରୋଷ ?"

କହନ୍ତି ମୀନା—"ମୋତେ ମାଇଲ ମାଡ଼
ଖେଳାଇ ଦେଲ ନାହିଁ କହିଲ—ପଢ଼,
ଯଦି ମୋ ଇଚ୍ଛାରେ ମୁଁ ବସି ପଢ଼ିବି
ମାଟି କଣ୍ଢେଇମାନ କେବେ ଗଢ଼ିବି ।



ଅଙ୍କିଲେ ଛବି କିମ୍ବା ଗୁନ୍ଥିଲେ ମାଳ
ନାଚିଲେ ନାଚ କିମ୍ବା ଖେଳିଲେ ଖେଳ
ମାଗିଲେ ନୂଆ ଖାତା କଲମ, କାଲି
ଆଜିଠୁ ଯଦି ଆଉ ନ ଦେବ ଗାଳି

ଛା' ହେଲେ ଲେଉଟିବ ସିନା ଘରକୁ
ନ ହେଲେ ଉଡ଼ିଯିବ ଦୂର ଦୂରକୁ ।
କହନ୍ତା ମୀନା ପୁଣି ଯାଆନ୍ତା ଦୂରେ
ଥାଆନ୍ତା ଯଦ ଛା'ର ଡେଣାରୁ ଯୋଡ଼େ ।

ମନ ଖୁସିରେ ବୁଲ ଫେଶଲେ ଘର
ଡାକନ୍ତେ ପୁଣି ମା—"ମୀନା ଲୋ ମୋର
ଭୋକରେ ମୁହଁଟି ତୋ ଗଲାଣି ଶୁଖି
ଛୋଟିଆ ଡେଣା ଯୋଡ଼ି ଯିବଣି ଥକି ।

ଖାଇବୁ ଆ···ଗୃହାଁ ଡୁବଲେ ରବ
ଆକାଶ ଧାରେ ଦେଖ ଲୋହିତ ଛବ
ଅନ୍ଧାର ହେବ ତୋତେ ମାଡ଼ବ ଡର
କାଲକ ଯିବୁ ପଛେ ବଦେଶ ଦୂର ।

ଅନ୍ଧାର କଥା ଶୁଣି ମୀନା ଯେ ପୁଣି
ଧରି ପକାନ୍ତା ଆସି ମାଆଙ୍କ କାନ
ଭୋକ ହେଲାଣି ବୋଲି ଆଗ କହନ୍ତା
ଆମ ମୀନାର ଯଦ ଡେଣା ଥାଆନ୍ତା ॥



# ଗୋଟିଏ ଥିଲା ଗଛ

ଗୋଟିଏ ଥିଲା ଗଛ,
ଗଛରେ ଥିଲା ଡାଳ,
ପତ୍ରଭରା ଡାଳ,
ଗୋଟିଏ ନୁହେଁ, ଦୁଇଟି ନୁହେଁ,
କେତେ ନା କେତେ ଡାଳ,
ଡାଳ ଡାଳ ଡାଳ ।

ଗୋଟିଏ ଥିଲା ଗଛ,

ଗଛରେ ଥିଲା ଡାଳ,
ଡାଳକୁ ଡାଳେ-ପତର ମାଳେ
ଫୁଟି ଯେ ଥିଲା ଫୁଲ;
ଗୋଟିଏ ନୁହେଁ, ଦୁଇଟି ନୁହେଁ
କେତେ ନା କେତେ ଫୁଲ,
ଫୁଲ ଫୁଲ ଫୁଲ !

ଗୋଟିଏ ଥିଲା ଗଛ,

ଗଛରେ ଥିଲା ଡ଼ାଳ,
ଡ଼ାଳରେ ଥିଲା, ଚଢ଼େଇଟିଏ,



ତା' ଦେହେ ଥିଲା ପର,
ଗୋଟିଏ ନୁହେଁ, ଦୁଇଟି ନୁହେଁ,
କେତେ ନା କେତେ ପର,
ପର ପର ପର ।

ଗୋଟିଏ ଥିଲ୍ ଗଛ,

ଗଛରେ ଥିଲ୍ ଡ଼ାଳ,
ଡାଳରେ ବସି ଚଢ଼େଇଟିଏ,
ଖୁସିରେ ଖାଏ ଫଳ,
ଗୋଟିଏ ନୁହେଁ, ଦୁଇଟି ନୁହେଁ,

କେତେ ନା କେତେ ଫଳ,
ଫଳ ଫଳ ଫଳ ।

ଗୋଟିଏ ଥିଲ୍ ଗଛ,

ଗଛରେ ଥିଲ୍ ଡ଼ାଳ,
ଡ଼ାଳରେ ବସି, ନାଲି ଚଢ଼େଇ,
ଗାଇଲ୍ ମିଠା ଗୀତ,
ଗୋଟିଏ ନୁହେଁ, ଦୁଇଟି ନୁହେଁ,
କେତେ ନା କେତେ ଗୀତ,
ଗୀତ ଗୀତ ଗୀତ ।

ଗୋଟିଏ ଥିଲ୍ ଗଛ,

ଗଛରେ ଥିଲ୍ ଡ଼ାଳ,
ପତର ମାଳ ମାଳ,
ଫୁଟି ଯେ ଥିଲ୍ ଫୁଲ,
ଝୁଲୁ ଯେ ଥିଲ୍ ଫଳ,
ଡ଼ାଳରେ ବସି ଚଢ଼େଇଟିଏ
ଖୁସିରେ ଗାଏ ଗୀତ,

କହିଲା ଦାଜନ ଗଛ
ଚଢ଼େଇଟିକୁ ଡ଼ାକ
"ଯିବନ ଉଡ଼ି, ଯିବନ ଉଡ଼ି,
ତୁମେ ତ ମୋର ମିତ !"
ମିତ    ମିତ    ମିତ !!



# ସିଏତ ମହାତ୍ମା

ବୈହୁଅ ମାସ !                    ହୋଇ ଯେ ଥିଲା
ସ୍କୁଲର ଖେଳ ଛୁଟି
ଯେତେକ ସବୁ ପିଲା

ଧାଇଁ ଧାଇଁକା                    ଡେଇଁ ଡେଇଁକା
ଖେଳୁ ଯେ ଥିଲେ ଖେଳ
ଯେତେକ ସବୁ ପିଲା !

ସେତକି ବେଳେ                    ଆସିଲା ଜଣେ
ନହନହକା ବୁଢ଼ା,
ହାତରେ ଧରି ବାଡ଼ି

ବୁଢ଼ାକୁ ଦେଖି                    ଆସିଲେ ଛୁଟି
ସପନ, ରମୁ, ମଧୁ
ଯେଝାର ଖେଳ ଛାଡ଼ି ।

ସ୍କୁଲ ପାଖ                    ଗଛର ମୂଳେ
ବସିଲା ଯହୁଁ ବୁଢ଼ା
ଦେହରୁ ବହେ ଝାଳ,

କହିଲେ ପିଲେ—                    "କାହିଁକି ତୁମେ
ଏଠାରେ ଗଲ ବସି
ଦେହେ କି ନାହିଁ ବଳ ?"



କହିଲା ବୁଢ଼ା—                    "ହଁ ରେ ପିଲେ
ପାଦର ସବୁ ବଳ
ହାତର ସବୁ ତାଣ,

ଗଲ୍‌ଣି କମି ପାରୁନ ଚାଲି
ପାରୁନ ସହି ଖରା
ହେଲଣି ବୁଢ଼ା ଜାଣ !”

ମଧୁ ନାମରେ ଛୋଟ ପିଲାଟି
କହିଲା ହୋଇ ଆଗ—
“କୁହନ କରି ସତ

ତୁମେ କି ସେଇ ଗାନ୍ଧୀ ବୁଢ଼ା
ସାଧିଲ ଦେଶ ହିତ
ଅରିକୁ କରି ମିତ ?

ଯିଏ ସେ ଦେଲେ ସବୁରି ବୁକେ
ସ୍ୱାଧୀନ ଭାବ ଆଣି
ଫୁଙ୍କା ଦେହେ ବୁଲି

ତୁମେ କି ସେଇ ଯିଏ ସେ ଆମ
ଜାତିକୁ କଲେ ଏକ
ଆପଣା ସୁଖ ଭୁଲି ?

କହିଲା ବୁଢ଼ା— “ନୁହେଁ ରେ ନୁହେଁ
ମୁହିଁ ତ ଛାର ବୁଢ଼ା
ଜାତିର ସିଏ ପିତା !

ଅଛୁଆଁ ଓଠେ ଦେଲେ ସେ ହସ
ପାରୁ ସେ ଥିଲେ ବୁଝି
ଦୀନର ମନ କଥା ।

ତୁମର ଅଜା
ତୁମର ଜେଜେ-
ପର ମୁଁ ଅଟେ ଜଣେ
ତୁମକୁ ଦେଖି ଖୁସି—
ଯାହାର କଥା
କହିଲ ତୁମେ
ସିଏ ଯେ ମହାତ୍ମା
କହିଲା ବୁଢ଼ା ହସି ।"



# ଜନମ ଦିନରେ

## ମା' ନିକଟରେ ଶପଥ

ଶପଥ କରୁଛି ମା' ଗୋ
ତୁମରି ପୟରେ
ମହନ୍ତ ଜନଙ୍କ ବାଣୀ
ରଖିବି ମନରେ ।
ନ କହିବି ଅକଥା ମୁଁ
ନ କରି ଅକାମ,
ସବୁବେଳେ କରୁଥିବି
ଜନସେବା କାମ ।
ଜାତି ଅଜାତିର ଭେଦ
ମନକୁ ନ ଆଣି,
ଭୋକିଲାକୁ ଦେବି ଭାତ
ଶୋଷିଲାକୁ ପାଣି ।
ଭୋକରେ ମରିବି ପଛେ
ନ ମାଗିବି ଭିକ,
ସଦା ଓ ସର୍ବଥା ରଖି
ଆପଣାର ଟେକ ।

ଦୁଃଖୀର ହରିବ ଦୁଃଖ
ମିଠା କଥା କହି
କାଆଣି ରୋଗୀର ସେବା
କରୁଥିବ ମୁହିଁ ।
ଧନ ଲାଗି ନ ଲୁଟିବ
ଅପରର ଧନ,



ମାନ ଲାଗି ନ ଲୁଟିବ
ଅପରର ମାନ ।
ଯେତେ ବଡ଼ ମଣିଷଙ୍କ
ଯେତେ ଭଲଗୁଣ,
ସବୁ ଶିଖିବାକୁ ମା' ଗୋ
କରିବ ସାଧନ ।

ନୂଆ ତତ୍ତ୍ୱ ଆବିଷ୍କାର
କରି ମୁଁ ବିଜ୍ଞାନେ,
ଆଲୋକ ବୁଣିବି ମୁହିଁ
ବିଶ୍ୱର ଜୀବନେ ।

ଜନମ ଦିନରେ ମା' ଗୋ
ଏଇ ମୋ ଶପଥ
ଆଦର, କରୁଣା, ଜ୍ଞାନ
ମୋ ଜୀବନ ପଥ ।



# ପିଲ୍‌ଟିର ନାଁ ସିନା ଝଡ଼ୁଆ

ପିଲ୍‌ଟିର ନାଁ ସିନା ଝଡ଼ୁଆ,
ତାର କାମ-ଦାମ ଜାଣ କେତେ ବଢ଼ିଆ !

ଯେତେବେଳେ ଯାଏ ସିଏ ଇସ୍‌କୁଲ୍
ହସେ ଲସେ ହେଉଥାଏ କୁଲ୍ କୁଲ୍ ।
ଯତନରେ ରଖେ ନିଜ ସିଲଟ
ଚିରେ ନାହିଁ କେବେ ବହି ମଲାଟ ।
କେବେ ହେଲେ ବହି ଖାତା କାଗଜ
କରେ ନାହିଁ, କରେ ନାହିଁ ମଇଳା ।
ପିଲ୍‌ଟିର ନାଁ ସିନା ଝଡ଼ୁଆ ।

ଯେତେବେଳେ ଖେଳେ ସିଏ ଖେଳରେ
ରାମ, ଶ୍ୟାମ, ଯଦୁ, ମଧୁ ମେଳରେ,
କାହାକୁ ସେ ଫୋପାଡ଼େନା ବାଲି ତ,
ହାରିଗଲେ ଦିଏ ନାହିଁ ଗାଳି ତ,
ହସି ହସି ଖେଳୁଥାଏ ସରାଗେ
ଡେଇଁ ଡେଇଁ ଡେଇଁ ଯାଏ ପଡ଼ୁଆ ।
ପିଲ୍‌ଟିର ନାଁ ସିନା ଝଡ଼ୁଆ ।

ଚଉଳ କି ଗହ୍ମ ସେ ବୁଣେ ନା
ଫୁଲ୍ ଲତା ଗଛ ଡାଳ ହାଣେ ନା,
ମଳି ହାତ ନ ପୂର୍ଏ ପାଟିରେ
ଯତନରେ ନଖ ଧଏ କାଟିରେ ।

ପଚରଲେ ନାଁ ତାକୁ କହେ ସେ
“ମୋଲ୍ ନାଁଆ ଝିଲ ଝିଲ ଝଲଆ ।”
ପିଲ୍ଟିର ନାଁ ସିନା ଝଡ଼ୁଆ,
ତା’ର କାମ-ଦାମ ଜାଣ କେତେ ବଢ଼ିଆ ।



# ଶୋଇପଡ଼୍ ଶିଶିର

ରାତ ହେଲା     ରାତରେ,
ଶୋଇପଡ଼୍ ଶିଶିର ତୁ
ବୁଢ଼ୀ ମା କତରେ ।

ରାତ ହେଲା ଅଂଧ     ହେଉ ନାହିଁ ବୋଧ
ମୂଷିକର ଡାକରେ     ନିଦ ଭାଙ୍ଗେ ପୁସିର ।

ମଶାରିର ଭିତରେ     ଛଟପଟ କିଏ ସେ ?
ବୁଢ଼ୀ ମା କୋଳରେ     ଇଁ ଇଁ ଶିଶିର ।

ବିଲେଇ ନା ଫିଲେଇ     ଶିଶିର ନା ଫିଶିର
ମଥା ପିଟି ହେଉଛନ୍ତି     ମଶାରିରେ ମଶାଟି
ମୂଷା ଛୁଆ ଚିହିଁ ଚ     କୁଲୁ କୁଲୁ ଡାକନ୍ତି
ଆସ ଆସ ବିଲେଇ     ଯେତେ ଅଛ ଯେଉଁଠି ।

କାଶୁ କାଶୁ କାନ୍ଦୁଚି     କାନ୍ଦୁ କାନ୍ଦୁ କାଶଇ
ଆମ ଘର ଶିଶିର     ତାଙ୍କ ଘର ବିଲେଇ ।

ଶୋଇଲେଣି ସଭିଏଁ
ବୁଢ଼ୀ-ମା ନି-ଚଳ,
ମଶା ଯେତେ ଥିଲେଟି
ମଶାରିର କଡ଼ରେ,
ଗୁଁ-ଗୁଁ ରାଗରେ
ବସି ଖଟ ବାଡ଼ରେ
ଆରାମରେ ଶୋଇଛି
ଆଖି ବୁଜି ଶିଶିର ।



ଶିଶିର ନା ଫିଶିର
ବିଲେଇ ନା ଫିଲେଇ
ମଶା କହେ ରାଗରେ
ନିଶ ତା'ର ହଲେଇ ।

# ସୁକୁମାରୀ ମାଉସୀ

ମଉସା, ଦଅ ପଇସା
ମାଉସୀ କରିବ ଜାଗର ଓଷା ।

ମୁଆଁ ଗୋଟି ପଚିଶକୁ
ଲଡ଼ୁ ଗୋଟି ଷାଠିଏ
ଖାଇ ଗୁଡ଼ ଢନଣ’ ଯେ
ଚକଟି ଦେଲେ ମୁଠିଏ ।

ସୁକୁମାରୀ ମାଉସୀ ମୋ ଘି-ପଠା ଖାଏନା,
ପାଦ ତା’ର କାଟେ ବୋଲି
ଦେଉଳକୁ ଯାଏନା ।
ହାତ କଟିଯିବ ବୋଲି
କାଟେ ନାହିଁ ଶାଗ ଯେ,
ଭଲ ମନ୍ଦ ଚାଖିବାକୁ
ଖାଇ ବସେ ଆଗ ଯେ,
ପେଟ ପଡ଼ିଯିବ ବୋଲି
ଗାଲେ ନାହିଁ ଭାତ ଯେ
ଅଇଁଠା କି ମଇଁଠାରେ
ଲଗାଏ ନା ହାତ ଯେ ।

ପୀତାମ୍ବରୀ ପାଟ ପିନ୍ଧି
ପଲଙ୍କରେ ଶୁଏ ସେ
ଦରପଣେ ଚାହିଁ ଚାହିଁ
ମୁହଁ ହାତ ଧୁଏ ସେ ।



ମଉସା ହେ ମଉସା !
କଏ ଆମ ସୁକୁମାରୀ ମାଉସୀର ସରସା ?
ଦିନ ଦଶରେ ବାସି କାମ ଏଗାରଟାରେ ଦାନ୍ତ ଘସା
ହାଏ ହାଏ ହାଏ—ସତେ କି ପଡ଼ିଚ ତାର ଦଶା !
...ପୋଇଲି ଜଣେ ଖଞ୍ଜି ଦିଅ ଯେ
ଖାଉଥିବ ନିତ ଗୋଡ଼ ଘସା ।।



# ଉଡ଼ଗଲ୍ ଗେଣ୍ଡାଳିଆ

ଉଡ଼ଗଲ୍ ଗେଣ୍ଡାଳିଆ ପର ଦେଲ୍ ଝାଡ଼
ପଡ଼ୁ ପଡ଼ୁ ଏସିଆର ଖଡ଼ଗଲ୍ ଗଡ଼ ।

ଖଡ଼ଗଲ୍ ଗଡ଼ କି ସେ
ହଲଗଲ୍ ଚାଳ,
ହଲଗଲ୍ ଚାଳ କି ସେ
ଛିଡ଼ ଗଲ୍ ମାଳ ।

ଛିଡ଼ଗଲ୍ ମାଳ କି ସେ ମୁଡ଼ି ଗଲ୍ ଉଡ଼
ଆସିଲ୍ ବରଷା ଝଡ଼ କରି ଘୋର ରଡ଼ ।

କାହିଁ ଗଲ୍ ଗେଣ୍ଡାଳିଆ
କାହିଁ ତା'ର ପର ?
କାହିଁ ତା'ର ପର କି ସେ
କେଉଁଠି ତା' ଘର ?
କେଉଁଠି ତା' ଘର କି ସେ
ଅଛୁ ନା ତା' ଆଈ ?

ଅଛି ନା ତା' ଆଈ କି ସେ
ଅଛି ନା ତା' ଭାଇ ?

ଆକାଶରେ ମେଘ ଦେଖି ସାଙ୍ଗ ସାଥୀ ଛାଡ଼ି,
ଉଡ଼ିଗଲା ଗେଣ୍ଡାଳିଆ ପର ଦେଇ ଝାଡ଼ି ॥



# ଟିକି ଚଢ଼େଇ

କୁଆଡ଼େ ଯାଉ
କେଉଁଠି ଥାଉ ?
ଟିକି ଚଢ଼େଇରେ ଟିକି ଚଢ଼େଇ !



କ'ଣ ଖାଉ
କେଉଁଠ ଶୋଉ ?

ଯାଏଁ ଟିକ ବଣକୁ
ଥାଏ ଟିକ ବୁଦାରେ
ଟିକ ଟିକ ପୋକ ଖାଇ
ମେଣ୍ଟାଏ ମୋ କ୍ଷୁଧାରେ ।

ଟିକ ଗଛ ଡ଼ାଳେ ଯହିଁ
ପତରର ଗହଳ
ସେଇଠି ମୁଁ ଶୋଇପଡ଼େ
ନିଦ ହୁଏ ବହଳ ।

ହେଲେ ବାଆ ବତାସି ପଡ଼ି ରହେ ପଦାରେ
ଝୁପୁ ଝୁପୁ ବରଷାରେ ହୋଇଯାଏ ଓଦାରେ ॥



# ହାଡ଼ ନାହିଁ କି ଖାଡ଼ ନାହିଁ

ପକ୍ଷୀଟିଏ ମୁଁ ପେଚୁ
ହାଡ଼ ନାହିଁ କି ଖାଡ଼ ନାହିଁ
କେବଳ ମାଉଁସ-ମେଞ୍ଚା



କୁହତ ପିଲେ କାହିଁକି ମୋତେ ଡର ?
ପଢ଼ିଲେ ମୋର ନାଁ ମା'ର ଛାନ ଧର ?

ନାହିଁ ତ ମୋର ହୁରୁଡ଼ା ନଶ
କାହାକୁ କେବେ ଖୋଇନ ବିଷ,

କାମୁଡ଼ ନାହିଁ କେବେ
କାହିଁକି ଡର ତେବେ ?

ନେଇଚ କେବେ କେଉଁ ଛୁଆକୁ ଧରି ?
ଦେଇଚ କେବେ କେଉଁ ପିଲାକୁ ଦଳି ?

ଆସ ହେ ରମୁ ଆସ ଗୋ ରମା
ଖେଳିବ ମୋର ତୁଲେ

କଥା ଦେଉଚି ହେବନି ରାଉ ରାଉ
ଡରନା ମୋତେ ପିଲେ ॥



ଉଠ୍ ଉଠ୍ ଉଠ୍

ଗଛ କହ୍ଲା ପତର !

ତୁ ଝଡ଼୍ ଝଡ଼୍ ଝଡ଼୍



ଗଗନ କହ୍ଲା ମେଘରେ

ତୁ ପଡ଼୍ ପଡ଼୍ ପଡ଼୍ ।

ପବନ କହିଲା ଧୂଳିରେ
ତୁ ଉଡ୍ ଉଡ୍ ଉଡ୍
ତାରା କହିଲା ଜହ୍ନରେ
ତୁ ବୁଡ୍ ବୁଡ୍ ବୁଡ୍ ।

ସକାଳ କହିଲା ଫୁଲରେ
ତୁ ଫୁଟ୍ ଫୁଟ୍ ଫୁଟ୍
କାଉ କହିଲା ବାବୁରେ
ତୁ ଉଠ୍ ଉଠ୍ ଉଠ୍ ।।



# କୁନି ଝିଅର ଅଭିମାନ

କାଇତ ସକାଳୁ ଦୁଧ କୋରୁଅ
ପୁଅ ବୋଲି ସବୁ ନନାକୁ ଦେଲୁ

ମୋ'ର ଭାଗକୁ ବୋକ ଗୋଟିଏ
ବୋଉ ତୁ କେମିତି ଅନ୍ତର କଲୁ ?



ବାପା ସଙ୍ଗେ ନନା ଖାଇବ ଭାତ
ବୁଲିବ ଖେଳିବ ଦାଣ୍ଡ ମଝିରେ

ମୁଁ କଅଁ ଖାଇବ ଦୁଧ କଳଏ

ପିଚ୍ଛି ହେଉଥିବ କନା ଶେଯରେ ?

ରହ ରହ ବୋଉ ଦେଖିବୁ ଦିନେ

କୁନି ଝିଅ ବୋଲି ଦେଉ ଆଡ଼େଇ

ବଡ଼ ହେଲେ ବାଢ଼ି ଖାଇବ ଭାତ

ପିଇ ଦେବ ସବୁ ଦୁଧ ଗେ୍ଲରେଇ ।



# ସୂର୍ଯ୍ୟର ମା

ମୋ' ମାଆ ତ ମୋ'ର ମାଆ
ସୂର୍ଯ୍ୟର ମା' କିଏ ?
ସୂର୍ଯ୍ୟର ମା'ଟି କେଉଁଠି କୁହ ଥାଏ ?
ସୂର୍ଯ୍ୟର ମାଆ ହେ।
କ'ଣ କର ବସି
ପୁଅକୁ ଚାହିଁ ଚାହିଁ
ହୁଅ କି ଭାରି ଖୁସି ?

ପୁଅଟା ତୁମ ଦୁଷ୍ଟ
ଆମକୁ ଦିଏ କଷ୍ଟ
ଘର ଭିତରେ କି କାମ କର ?
ପୁଅକୁ ଟିକେ ଶାସନ କର।

ଉଦୁଉଦିଆ ଦି-ପହରେ
କାହିଁକି ସିଏ ଖରାରେ ବୁଲେ ?
ଯେ ପାଣି ନାହିଁ ସେ ପାଣି ପିଇ
ଦେହଟି ତା'ର ଖରାପ କରେ।

ଦେଲେ କାକୁଡ଼ି କଷି
ରହିବ ଘରେ ବସି
ପିଇବାକୁ ଦେଲେ ଦହି
ପଢ଼ିବ ବସି ବହି।

ଯଦି ରାଜି ନ ହେଉଚ ସେଥିରେ
ତାକୁ ବସାଇ ଦିଅନା କଣ୍ଡରେ
କୁହ କରିବାକୁ ଯାଉ କାମ
କାମ କଲେ ମିଳେ ନାମ ।

କିଆଁ ସମୟ ସାରୁଚ ବସି ?
ତେଣେ ପଡ଼ିଆ ପଡ଼ିଚ ଜମି
ଦେଉନ ସେତେକ ଚଷି ।



# ମାଟିକଣ୍ଢେଇ

ମାଟି କଣ୍ଢେଇ ରେ, ମାଟି କଣ୍ଢେଇ !
କିଏ ଭାଙ୍ଗିଲ୍ ତୋ ହାତ ?

ମାଟି କଣ୍ଢେଇ ରେ ମାଟି କଣ୍ଢେଇ !
ତୁ କେମିତି ଖାଇବୁ ଭାତ ?

କେମିତି ଧରିବୁ ରଙ୍ଗିଆ ଛତା ରେ,
କେମିତି ଧରିବୁ ବାଡ଼ି ?

ଡାକ୍ତର ହେଲେ କହନା କେମିତି
ଦେଖିବୁ ରୋଗୀର ନାଡ଼ି ?

କେମିତି ଟେକିବୁ ଗଇଁତି, କୋଦାଳ,
କେମିତି କାଟିବୁ କାଠ,

କେମିତି ମୋଡ଼ିବୁ କଳରେ କଣ୍ଢେଇ !
କିଏ ଭାଙ୍ଗିଲ୍ ତୋ ହାତ ?

ନିଜ କାମ ନିଜେ କରି ନ ପାରିଲେ

କେମିତି ଚଳିବୁ ତୁହି ?

ଡାକି ଡାକି ତୋର ଗଳା ଶୁଖିଗଲେ

ଶୁଣିବେ ତ ନାହିଁ କେହି !



ହାତ ନାହିଁ ତୋର ପର ଉପକାର

କେମିତି ପାରିବୁ କରି ?

ବଢ଼ି ବରଷାରେ ଘର ଭାଙ୍ଗିଗଲେ

ଆଉ କି ପାରିବୁ ଗଢ଼ି ?

ଧରି ପାରିବୁନି କଲମ ଆଉ ତୁ,
ଲେଖି ପାରିବୁନି ଗୀତ,

ମାଟି କଣେଇରେ ମାଟି କଣେଇ !
କିଏ ଭାଙ୍ଗିଲା ତୋ ହାତ ?

ଜୁଲୁ ଜୁଲୁ କରି ଚଉକି ଉପରେ
ଆଉ କା ହାତକୁ ଚାହିଁ,

ବଡ଼ କଷ୍ଟରେ ତ ସାରା ଦିନରାତି
ଏକା ବସିଥିବୁ ତୁହି !!

ତୋଳି ପାରିବୁନି କଷି କାକୁଡ଼ିଟେ
ଗୁନ୍ଥି ପାରିବୁନି ଫୁଲ !!

ବୁଣି ପାରିବୁନି ସପ କି ମଶିଣା
ଲାଗି ପାରିବୁନି ମୂଲ !!

ବଞ୍ଚିଥିବା ଯାଏ ଖୋଇ ଦେଉଥିବି
ମୁହିଁ ସିନା ତୋତେ ଭାତ !

ମାଟି କଣେଇରେ ମାଟି କଣେଇ !
କିଏ ଭାଙ୍ଗିଲା ତୋ ହାତ ?



# ହୋଇବ ନେତା

ଆମର ବାବୁ ହୋଇବ ନେତା
ପିନ୍ଧି ଏକ କୋଟ୍

ମଟର ଚଢ଼ି ପେଁ-ପାଁ କହିବ ବୁଲି ଗାଁକୁ ଗାଁ
"ମୋତେ ହୋ ଦିଅ ଭୋଟ୍ ।"

"ସାଇ ସାଇରେ ବସାଇ ଦେବି
ଆଇସ୍‌କ୍ରିମ୍ କଳ

ଆମ୍ଭ ଗଛୁଁ ଝଡ଼ିବ ଜାମୁ
ଦାଆମ୍ବୁ ଦାମ୍ବୁ
ପାକଲ୍ ମିଠା ଫଳ ।"

ଦେବି ମୁଁ କେତେ କାଗଜ ନାଆ
ଯାହାକୁ ଯେତେ ଗୁଡ଼

କାଲୁଡ଼ି କଷି ଭଜା ପାଁପଡ଼ି
ମଅଡ଼୍—ମଡ଼
ପିଜୁଳି ଝୁଡ଼ ଝୁଡ଼ ।"

"ମେଣ୍ଢା ଛୁଆ ଗୋଟିଏ ଲେଖାଁ
ତୁମକୁ ଦେବ ଭାଇ,
ଇସିକୁଲକୁ ଯିବ ସେ ପଶି
ହଅସି—ହସି
ବେକରେ ବାନ୍ଧି ବହ୍ନ ।"

"ଶୁଣରେ ମୁନା କୁନଆ, ଧୁନା
ମୋତେ ଦିଅ ଦେଲେ ଭୋଟ୍
ସଭିଏଁ ମିଶି ଖାଇବା କେତେ
ଯେଏତେ ଯେତେ
ମିଳିବ ଚକୋଲେଟ୍ ।"



# ଜଣିଏ ନାହିଁ କେହି

କୁଆଡ଼େ ଗଲୁ ରମା
ଆଲୋ, କୁଆଡ଼େ ଗଲୁ ଯୂଇ ?
ଖେଳବା ପାଇଁ ସାଥୀ
ଆଜି ଜଣିଏ ନାହିଁ କେହି
ଏଣେ ସଞ୍ଜ ଆସେ ନଇଁ ।

କାଠିରେ କାଟି ଗାର
ଆଗୋ, ତୋଳଚ ଧୂଳି ଘର,
ଝରକା ସାନ ସାନ
ଦୁଆର ବଡ଼ ବଡ଼,
ବୈଠକରେ ପଡ଼ିଚ ସୋଫା
ଗାଲିଚ୍ଚ ଫୁଲ-ପକା
ହେଲେ, ଅତଥି ଜଣେ ନାହିଁ ।
ଏଣେ ସଞ୍ଜ ଆସେ ନଇଁ ।

ଏକାଠି କର ବାଲି

ଦେଉଳଟିଏ ଚେଖାଳ

ମାଟିରେ ଗଢ଼ି ଦଅଁ

ପୂଜିଲି ଗୀତ ବୋଲି ।

ବାଲିରେ କ୍ଷୀର ବାଲିରେ ପୁରୀ



କରଚ ପିଠା ଓଉର ଖଣ୍ଡା

କିଏ ଖାଇବ ଏ ଭୋଗ-ରାଗ

ଜଣିଏ ନାହିଁ କେହି ?

ଏଣେ ସଞ୍ଜ ଆସେ ନଇଁ ।

କୁଆଡ଼େ ଗଲ ରମା, ଯୁଣ
କୁଆଡ଼େ ଗଲ ସାଥୀ ?

ଖେଳର କଥା ଭୁଲି ଯେ ଗଲ
କେଉଁ କାମରେ ମାତି !

ହୋଇ ତ ନାହିଁ କଳି
ଅବା ପଢ଼ ତ ନାହିଁ କଟି

ତୁମର ବନେ ଘର ଦୁଆର
ସବୁ ତ ବାଲି, ମାଟି !

ଏକୁଟିଆ ମୁଁ ବସିଛ ଏଠି
ତୁମର ପଥ ଚାହିଁ
ଏଣେ ସଞ୍ଜ ଆସେ ନଇଁ ।



# ମୁଇଁ ପର୍

## ଏ ଦେଶର ଭବିଷ୍ୟତ

ଗଛ ଡାଳେ ବସି ଦିନେ ଚଢ଼େଇ ଗୋଟିଏ
ଚାହିଁଲ୍ ତଳକୁ,
ଦେଖିଲ୍ ବସିଛି ଏକା ଛୋଟ ପିଲାଟିଏ
ଆଉଜି ଗଛକୁ ।

ଦେହରେ ତା ନାହିଁ ଜାମା ଗାମୁଛା କୋତର୍
ଧୂଳିରେ ମଳିନ,
ଗଣି ହୁଏ ଗୋଟି ଗୋଟି ତା' ଛାତର ହାଡ଼
ମୁହଁଟି କରୁଣ ।

ତାକୁ ଦେଖି ପଚାରିଲ୍ ଗଛର ଚଢ଼େଇ
"କିଏ ତୁମେ କୁହ ?
କିଏ ତୁମ ବାପ-ମାଆ, କେଉଁଠାରେ ଘର ?
ଦିଅ ପରିଚୟ ।"

ଏଠାକୁ ମୁଁ ଆସେ ନିତ ଖାଇବାକୁ ଫଳ
ଖଟା ମିଠା ଚାଖି,

ତୁମକୁ ତ ଏ ଗ୍ରାମର ପିଲାଙ୍କର ମେଳେ
ନାହିଁ କେବେ ଦେଖି ।
ଚଢ଼େଇର କଥା ଶୁଣି ଉପରକୁ ଚାହିଁ
କହିଲା ବାଳକ,



"ବାପ-ମାଆ ଛେଉଣ୍ଡ ମୁଁ ନାହିଁ ମୋର କେହି
ଜଣେ ବି ପାଳକ ।
ମାଗି ମାଗି ଖାଏ ଯେବେ ଯହିଁ ମିଳେ ଯାହା
ବାସି ବା ଶୁଖିଲା,

କେବେ ପାଣି ପିଇ       କେବେ ଶୋଇ ପଥର
ରହେ ମୁଁ ଏକେଲା ।

ତୁମେ କଏ ମହାତମା       ଚଢ଼େଇ ରୂପରେ
ମୋହି ନିଅ ମନ,

ମୁହିଁ ପରା ଏ ଦେଶର       ଭବିଷ୍ୟତ, ତୁମେ
ଏହା କି ନ ଜାଣ ?

ଖାଇବାକୁ ଭାତ ନାହିଁ       ପିନ୍ଧିବାକୁ ଲୁଗା
ରହିବାକୁ ଥାନ,
'ଆହା' କରିବାକୁ—ମୋର ନାହିଁ କେହି ସାହା
ବଡ଼ ହୀନମାନ ।"

ପିଲାଟିର କଥା ଶୁଣି       କହିଲା ଚଢ଼େଇ
"ଶୁଣରେ ବାଳକ ।

ଅଛନ୍ତି ଏ ଦେଶେ କେତେ       ପର ଉପକାରୀ
ହେବେ ରେ ପାଳକ ।

ଅନାଥ ଆଶ୍ରମ ପରି       କେତେ ଅନୁଷ୍ଠାନ
ହୋଇଅଛି ଗଢ଼ା,

ରହିବ ଖୁସିରେ ପୁଣି       ହୋଇବ ସେଠାରେ
ତୁମ ପାଠ ପଢ଼ା ।

ପାଠ ବଳେ ଶ୍ରମ ବଳେ    ଖଣିଜ-ଧନର
ଉପଯୋଗ କରି,

ବୁଦ୍ଧି ବଳେ ଯନ୍ତ୍ର ବଳେ    ତୁମେ ଶିଖି ନେବ
କମ, କାରିଗରି ।

ଯେ ଦେଶର ମାଟି ତଳେ    ରହିଅଛି ପୂରି
ଧନ ମନ-ଲୋଭା,

ସେ ଦେଶର ଶିଶୁ ମୁଖେ    ଅସହାୟ ଭାବ
ଦିଶେ ନାହିଁ ଶୋଭା ।

ବଡ଼ ହେଲେ ସ୍ଥାପି    କଳ-କାରଖାନା, ଗଢ଼ି
ଅମୂଲ୍ୟ ଦରବ

ବଣିଜ କଲେ ବଢ଼ିବ    ଦେଶର ସମ୍ପଦ
ଜାତିର ଗରବ ।

କାମେ ଲାଗିଥିଲେ ଦିନେ    ମିଳିବ ତୁମକୁ
ପରିଶ୍ରମ ଫଳ,

କେଉଁ ଶିଶୁ ମୁଖେ ଆଉ    ନ ରହିବ ଦୁଃଖ
ଦିଶିବ ଉଜ୍ଜ୍ୱଳ ।

ତୁମକୁ ଦେଉଚି ଫଳ    ସରିଗରେ ଖାଅ
ଥିର ହେଉ ମନ,

ଛାଇରେ ବିଶ୍ରାମ ନିଅ    କମିଗଲେ ଖରା
ଯିବ ଅନ୍ୟ ଥାନ ।



# ଝୁପୁ ଝୁପୁ ବରଷାରେ ଭିଜନା

ଝୁପୁ ଝୁପୁ ବରଷାରେ ଭଜନା
ବୁଟ ଭଜା ଖୋଜନା ।

କାହିଁକିରେ ଟୁକୁନା ବରଷାରେ ଭିଜୁ ତୁ
କେଉଁ କଥା ହଜାଇ ଏକୁଟିଆ ଖୋଜୁ ତୁ ?

ଆସ ଆସ ଛେଳି ଛୁଆ ମେଣ୍ଢା ଛୁଆ ଯେତେକ
ଟୁକୁନାର ପଢ଼ା ଘରେ ବସିବ
ବହି ପଢ଼ି ହସିବ
ଛବି ଦେଖି ଥେଇ ଥେଇ ନାଚିବ ।

ଟୁକୁନାର ମନରେ ଅଛି କେଉଁ କଥାରେ
ଛେଳି ଛୁଆ ପରି ସିଏ ବରଷାରେ ଭିଜୁଛି
ଭିଜି ଭିଜି କେଉଁ ଚିଜ ଖୋଜୁଛି ?
କଲମ ନା ରବର ଇସ୍କୁଲେ ହଜାଇ
ପଢ଼ିଆରେ, ସଡ଼କରେ, ଗଛମୂଳେ ବୁଲୁଛି !

ଝୁଲୁନାରେ ଝୁଲୁନା
ଆଉ ଓଦା ହୁଅନା ।
ବୁଢ଼ାନାହୁଁ ପାହୁଲ ତୁ    ଚର୍-ଚର୍ ସୁଅରେ
କାଦୁଅର ଛିଟା    କେତେ ପଡ଼ଲାଣି ମୁହଁରେ ।
ରହ ରହ ବଜୁଳ
ଉଠୁଚରେ ଉଜଳ ।

ଛେଳି ଛୁଆ ଗଲେଣି
ମେଣ୍ଢା ଛୁଆ ଗଲେଣି ।
ହଜିଥାଉ ଯାହା ତୋର    ହଜିଚରେ ଝୁଲୁନା
ଝୁପୁ ଝୁପୁ ବରଷାରେ    ଆଉ ଓଦା ହୁଅନା ।



## ଖେଳଘୁଡ଼ି

ଯା'ରେ ଉଡ଼ାଜାହାଜ ଯା
ଘୁଁ-ଘୁଁ-କା ଉଡ଼
ଛୁଇଁ-ଛୁଇଁକା ମେଘରେ ଖେଳେ ଆମର ଖେଳଘୁଡ଼ି ।



ଡେଣାରେ ମେଘ ଚକରେ ମେଘ
ନାକରେ ମେଘ ଠେଲି

ଯା’ ତୁ ଉଡ଼ି ଛୁଇଁବୁ ନାହିଁ
ଆମର ନାଲି ଘୁଡ଼ି ।

ଦେଖିବୁ ଯଦି ରହି ଯା ଟିକେ
ତଳକୁ ଥରେ ଚାହିଁ,
କହି ଦେଉଚି ସରୁଆ ସୂତା
କାଟିବୁ ନାହିଁ ନାହିଁ ।

କାଗଜେ ଗଢ଼ା ହେଲେ ଦେହ
ନାହିଁ ତା’ ମନେ ଡର,
ନାଚ ନାଚକା ପବନ ସାଥେ
ଖେଳୁଚି କେତେ ଖେଳ ।

ମାରିଲେ ଝଟକା ବାଜିବ ନାହିଁ
ଉଠେଇ ଯାଏ ଉଡ଼ି
ପାରିବ କିଏ ଧରିବେ ତାକୁ
ଡେନଟା ଗଛ ଯୋଡ଼ି ।

ଯା’ରେ ଉଡ଼ାଜାହାଜ ଯା
ତୋ ବାଟରେ ଉଡ଼ି
ଛୁଇଁବୁ ନାହିଁ କାଟିବୁ ନାହିଁ
ଆମର ଖେଳଘୁଡ଼ି ।



## ଗଲେ ଗାଈ ଚରେଇ

ବାଇ ଚଢ଼େଇ, ଆରେ ବାଇ ଚଢ଼େଇ !
ତୋ'ମା ମୋ'ମା ସାଙ୍ଗ ହୋଇ
ଗଲେ ଗାଈ ଚରେଇ ।

ଚଲିଲ୍ ଖର୍ ଆଉ ଫେରିଲେ ପକ୍ଷୀ
ହେଲ୍ ସଞ୍ଜ ବେଳ
ଫେରିଲ୍ ନାହିଁ କାହିଁ ମା' ଯେ ମୋର
ଧରି ପାଚଲ୍ ବେଲ୍ ।

ଫେରିଲେ ଚୁଆଁ-ଚୁଇଁ କଜଳପାତି
କେତେ ମଇନା ଶୁଆ
ମାଳକୁ ମାଳ ବଗ ଫେରିଲେ ଯେତେ
ଥିଲେ କୋଇଲି କୁଆ ।

ଆସିଲ୍ ଫେରି ଏକା ମା'ଟି ତୋ'ର
ଡାକ ଦେଇ ହଲେଇ
ମା'ଟି ମୋର କାହିଁ ଫେରିଲ୍ ନାହିଁ
ଆରେ ବାଇ ଚଢ଼େଇ ।

ତୋ'ମା ମୋ'ମା ସାଙ୍ଗ ହୋଇ
ଗଲେ ଗାଈ ଚରେଇ ।

ବିତଲା ରାତି କେତେ ବିତଲା ଦିନ
କେତେ ବହିଲା ବାଆ,



କହିଲେ ନାହିଁ କେହି ଥରେ ତ ଆସି
କାହିଁ ଅଛି ମୋ'ମାଆ ।

ତୋ'ପରି ଅଣକଟି, ତୋ'ପରି କୁନି
ନାହିଁ ଦେହରେ ବଳ

ଧୂଳିରେ ଗଡ଼େ ମୁଁ ରେ ଉପାସେ ଥାଏ
ଖାଇ ଅଁଳିଠା ଫଳ ।
ଅଧିକା ଅଛି ତୋର ମାଆ ସିନେହ
ଆରେ ବାଇ ଚଢ଼େଇ
ନ ଜାଣେ ଗଲା ମା' କେଉଁ ବଣକୁ
ମୋତେ ଶୋଇ ପକେଇ ।

ତୋ'ମା ମୋ'ମା ସାଙ୍ଗ ହୋଇ
ଗଲେ ଗାଈ ଚରେଇ ।
ପାଖ ଗାଁକୁ ଦନେ ଗ୍ଲଲଗ୍ଲଲକା
ଗଲି ମା'କୁ ଖୋଜି
ଦେଖିଲି ଏକ ଘରେ ବାଜୁଚ ବାଜା
ପୁଣି ଗ୍ଲଲଚ ଭୋଜି ।

ମାଆ ପରି ଦଶୁ ଥିଲା ଜଣେ ସେ କିଏ
ତା'ର କାନକୁ ଧରି
କହିଲି—'ମାଆ ମୋର କେଉଁ ଦୋଷକୁ
ଏକା ଆସିଲୁ ଛାଡ଼ି ।'

କହିଲା ସିଏ ହାତୁ ଛଡ଼ାଇ କାନ—
"ଆରେ ଅସନା ପିଲା"
"ତୋ' ମାଆ ଯାଇଥିବ ପଡର ଖୁଁଟି
ଯାଆ ଦୂରକୁ ପଳା ।"

ଦୁଇ ହାତରେ ପୋଛି ଆଖିର ଲୁହ
କରି ତଳକୁ ମୁହଁ

ଗୃହିଲି ପୁଣି ଡାକ—ମା'କୁ ମୋର
କେହି ଦେଖିଛ କୁହ ।
ଶୁଣିଲେ ନାହିଁ କେହି, ଦେଖିଲି ଦୂରେ
ମୋର ମାଆର ଗୁଲ
ବାଇ ବସି ଜଣେ ବାଛ କଡ଼ରେ
ଧରି ପାଚିଲା ବେଲ ।
ପିଠିରେ ଲଦି ହୋଇ କହିଲି—"ମାଆ
ଟିକେ ପୁଅକୁ ତୋ'ର
କାପରି ଗଲୁ ଭୁଲି ସେଇ ଦିନରୁ
କେଉଁ କଥାକୁ ଭା'ର ?"
କହିଲା ସିଏ ମୋତେ ଦୂରକୁ ଠେଲି
—"ଆରେ ଅସନା ପିଲା
ତୋ'ମା ଯାଇଥିବ ପତର ଖୁଣ୍ଟି
ଯାଆ ଏଠାରୁ ପଳା ।"
ଭେଟିଲି ଯେତେ ମାଆ ଭଉଣୀ ଯହିଁ
ଦିନେ ଜଣେ ବି କେହି
କହିଲେ ନାହିଁ ଆହା, ନ କଲେ କୋଳ
ଆରେ ବାଇ ଚଢ଼େଇ ।
ତୋ'ମା ମୋ'ମା ସାଙ୍ଗ ହୋଇ
ଗଲେ ଗାଈ ଚରେଇ
ମା'କ ତୋ'ର ମୋର ମା'କୁ କାହିଁ
ଦେଲା ବାଛ ଭୁଲେଇ ?



# ରଥଯାତ୍ରା

ପେଁକାଳି ବାଜେ ପୁଁ-ପୁଁ
ରଥ ଚାଲୁଥିବ ଘୁଁ-ଘୁଁ ।

ବାଜା ବାଜୁଥିବ ଝମ ଝମ
ଝାଳ ବୋହୁଥିବ ଗମ ଗମ ।

ଭିଡ଼ କରିଥିବେ ନରନାରୀ
ଖାଉଥିବେ ପୁରୀ-ତରକାରୀ ।

ଚକ ଗଡୁଥିବ ଫର ଫର
ନେତ ଉଡୁଥିବ ଫର ଫର ।

ନାଲିଆ ନେତକୁ କରି ଲକ୍ଷ୍ୟ
ଶୁଭୁଥିବ ଖାଲି ଜୟ ଜୟ ।

ଭଉଣୀ ଗୋଟିଏ, ଭାଇ ଦୁଇ
ଆଦର ପାଏଟି ପାଖେ ରହି ।

ବଡ଼ ଭାଇ କଥା ସାନ ମାନେ
କଥା କହୁଥାଏ ସଜମାନେ ।

ଭଉଣୀ ଗୋଟିକ ସୁନାଝିଅ
ହାର କରେ ନାହିଁ କେବେ ମୁହଁ ।

ଭାଇଙ୍କ ସହିତ ମିଶିମାଶି
କଥା କହୁଥାଏ ହସି ହସି ।

ଆଷାଢ଼ ମାସରେ ଫି-ସନ
ଯାତରା କରନ୍ତି ତିନିଜଣ ।

